# ଭାଇଜିଉନ୍ତିଆ

ଓଷାକଥା

ବା

ଦୁର୍ଗାଷ୍ଟମୀ ବ୍ରତ ଓ ଦୁର୍ଗାମାଲାଶ୍ରୀ

ପ୍ରକାଶକ :

ଶ୍ରୀ ରଣଜିତ ସିଂହ, ବି. ଏ. (ଅନର୍ସ) ଓ.ଇଡ଼



ଓଡ଼ିଶା

ଜଗନ୍ନାଥ କମ୍ପାନୀ

ବାଲୁବଜାର-କଟକ-୨

ମୂଲ୍ୟ – ଟ ୫-୦୦

# ଭାଇ ଜିଉନ୍ତିଆ ବ୍ରତ

## ଅଥ ପୂଜା ବିଧିଃ

ପୁରୋହିତ ବ୍ରାହ୍ମଣ ଗନିରେ ଦୁର୍ଗାଙ୍କୁ ପୁଷ୍ପାଦିଦ୍ୱାରା ଅଳଂକୃତ କରି ଆସନ ଭୂତଶୁଦ୍ଧି, ପ୍ରଣବ ଓ ମାତୃକାଦିପୂର୍ବକ ଅର୍ଘ୍ୟସ୍ଥାପନ ଓ ବରୁଣ ପୂଜା କରି ନିମ୍ନମତେ ସ୍ୱସ୍ତିବାଚନ କରିବ ।

ଗୁଆ ଗୁଡ଼ଜଳଧରି ଓଁ ବିଷ୍ଣୁଃ ଅମୁକସଗୋତ୍ରସ୍ୟ ଶ୍ରୀମତ ଅମୁକ ଦେବଶର୍ମ୍ମଣା ମମ ଅମୁକ ଅମୁକ * ସଗୋତ୍ରାଣାଂ ଅସ୍ମଦ୍ ଯଜମାନାନାଂ ଅମୁକାଦେବୀ ଅମୁକାଦେବୀ ଅମୁକାଦେବୀ * ନାଂ ସୌଭାଗ୍ୟାରୋଗ୍ୟ ପ୍ରାପ୍ତିପୂର୍ବକ ଚିରଜୀବୀ ପୁତ୍ର ଭ୍ରାତୃ ଦୁହିତୃ କାମନାଂ କରିଷ୍ୟେସ୍ମିନ୍ ଦୁର୍ଗାପୂଜା ବ୍ରତକର୍ମଣି ବ୍ରାହ୍ମଣାଃ ସ୍ୱସ୍ତ୍ୟାଦିକଂ ଭବନ୍ତୋଃବ୍ରୁବନ୍ତୁ ଓଁ ସ୍ୱସ୍ତି ନଇନ୍ଦ୍ରୋ ବୃଦ୍ଧଶ୍ରବାଃ ।୧। ଓଁ ଋଦ୍ଧ କର୍ମଣ୍ୟା ଅନପାୟିନୋ ।୨। ଓଁ ପୁନନ୍ତୁଆଦିତ୍ୟାରୁଦ୍ରା ।୩। ଇତ୍ୟାଦି ।

## ଅଥ ସଂକଳ୍ପଃ

ପୁରୋହିତ ବ୍ରାହ୍ମଣ କୁଶଜଳ ଗନ୍ଧପୁଷ୍ପ ଗୁବାକାକ୍ଷ ତାମ୍ବୁଳ ତାମ୍ରପାତ୍ର ଧରି ଦେଶକାଳବାକ୍ୟାନନ୍ତର ଅମୁକସଗୋତ୍ର ଶ୍ରୀମାନ୍ ଅମୁକଦେବଶର୍ମାହ୍ୱ ଅମୁକଅମୁକସ୍ୟ ଗୋତ୍ରାଣାଂ ଅସ୍ମଦ ଯଜମାନାନା ଅମୁକାଦେବୀ ଅମୁକାଦେବୀନାଂ ସୌଭାଗ୍ୟାରୋଗ୍ୟ ପ୍ରାପ୍ତ ପୂର୍ବକ ଚିରଜୀବୀ ପୁତ୍ର ଭ୍ରାତୃ ଦୁହିତୃ କାମନାଂ ଶ୍ରୀଭଗବତ୍ୟ ଦୁର୍ଗାପୂଜା ବ୍ରତକଥା ପଠନଂ ଶ୍ରବଣଂ କରିଷ୍ୟାମି । ଏପରି ସଂକଳ୍ପକରି ସୂକ୍ତ ପାଠ ପୂର୍ବକ ପୁଣ୍ୟାହବାଚନ କରିବ ।

---

* ଯେତେଜଣ ବ୍ରତ କରୁଥିବେ ସେମାନଙ୍କର ନାମ, ଗୋତ୍ର ପଡ଼ିବ ।

ତତ୍ପଥା—ଓଁ ପୁଣ୍ୟାହଂ ୩ ଏବମସ୍ତୁ ବଞ୍ଚାପଯ୍ୟା ମୁଚ୍ୟତାଂ ଗୋ ବ୍ରାହ୍ମଣେଭ୍ୟଃ ଶୁଭଂ ଭବନ୍ତୁ ରାଜ୍ଞଃ ପ୍ରଜାନାଂ ଶାନ୍ତିଭବନ୍ତୁ ଅମୁକସ୍ୟ ଗୋତ୍ରେଣ ଶ୍ରୀମତ୍ତ ଅମୁକଦେବ ଶର୍ମଣା ନଯ୍ୟା ଅମୁକ ଅମୁକସ୍ୟ ଗୋତ୍ରଣା ।

ଅସ୍ମଦଯଜମାନାନଂ ଅମୁକାଦେବୀ ଅମୁକାଦେବୀନାଂ ସୌଭାଗ୍ୟାରୋଗ୍ୟ ପ୍ରାପ୍ତିପୂର୍ବକ ଚିରଜୀବୀ ପୁତ୍ର ଭ୍ରାତୃ ବୃଦ୍ଧ୍ୟର୍ଥ କାମନାଂ ଶ୍ରୀଭଗବଦ୍ଧ ଦୁର୍ଗାପୂଜା କର୍ମାରମ୍ଭ ନିଯୁକ୍ତୋଯବେତ୍ଯାଦ । ଏଥି ଉତ୍ତାରେ ହସ୍ତରେ ପୁଷ୍ପଧରି ଦେବୀଙ୍କୁ ସ୍ତୋତ୍ରପାଠ କରି ଧ୍ୟାନ କରିବ ଧ୍ୟାନାନ୍ତେ ମାନସୋପଚାରରେ ପୂଜାକରି ବଶେଷାର୍ଘ୍ୟ ସ୍ଥାପନପୂର୍ବକ, ଏତେ ଗନ୍ଧପୁଷ୍ପେ ଓଁ ଆଧାରଶକ୍ତ୍ୟୋଦ ପୀଠ-ଦେବତାଭ୍ୟୋ ନମଃ ଏହିପରି ପୀଠପୂଜା ଶେଷରେ, ଅଷ୍ଟଶକ୍ତି ପୂଜା ଶେଷରେ ଅଷ୍ଟପୁଷ୍ପ, ଅଷ୍ଟଫଳ, ଜଳପୂର୍ଣ୍ଣ ଘଟ ଓ ଭୋଜ୍ୟୋତ୍ସର୍ଗ କରି ନିମ୍ନଲିଖିତ ମନ୍ତ୍ରରେ ବ୍ରତଧାରଣ କରିବ ।

ଓଁ ଦୁର୍ଗେ ଦେବୀ ଜଗଦ୍ଧାତ୍ରୀ ତନ୍ତୁ ସୂତ୍ରମିଦଂ ତବ । ବଧ୍ନାମି ବାହୁମୂଳେ ହଂ ବରଂ ଦେହି ଯଥୋପିସତଂ ।୧।

ଏହି ମନ୍ତ୍ରରେ ବାମ ହସ୍ତରେ ବ୍ରତଧାରଣ କରି କଥା ଶୁଣିବ ଓ କଥା ଶେଷରେ ଦେବତା ବିସର୍ଜନ ପୂର୍ବକ ଅଚ୍ଛିଦ୍ରାବଧାରଣ କରିବ । ଇତି ପୂଜାବିଧିଃ ।

———

# ଧାଇ ଜିଉନ୍ତିଆ ଓଷା କଥା



## ପ୍ରଥମ ଛାନ୍ଦ

ବନ୍ଦଇ ଜଗତ ଜନନୀ ଗିରିରାଜ ନନ୍ଦିନୀ
ହର ମୋ ଦୁର୍ଗତି ଦୁର୍ଗେ ଗୋ ହର ମନମୋହିନୀ ।
ନୂପୁର ରଞ୍ଜିତ ଆରକ୍ତ ସ୍ୱଚ୍ଛ ପଦ୍ମ ଚରଣେ,
ଶତତ ଶରଣ ରଖ ମା ଦୀନ ଏ ଅକିଞ୍ଚନେ
କାଞ୍ଚନ ନିନ୍ଦିତ ଶ୍ରୀଅଙ୍ଗେ ରକ୍ତ ଅମ୍ବର ସାଜେ
କରୀନ୍ଦ୍ର ଗମନେ ମଧୁର କଟି କିଙ୍କିଣୀ ବାଜେ ।
ବାହେ ବାଜୁବନ୍ଧ ଶୋଭଇ କରେ ମର୍କତ ଚୂଡ଼ି
ବକ୍ଷ ଦେଶେ ହୀରା ପଦକ ହେମ କମଳ କଢ଼ି ।
ଦଶ ଭୁଜେ ଦଶ ଆୟୁଧ ଦର୍ପି ଦର୍ପ ଦଳନେ
କଣ୍ଠେ ରୂପସୀ, ସୁବର୍ଣ୍ଣ କାପ ଯୁଗଳ କର୍ଣ୍ଣେ
ମନ୍ଦାର ଅଧର, ସ୍ଫଟିକ ଜିଣି ଦଶନ ପନ୍ତି
ନାସାପୁଟେ ମୁକ୍ତା ବସଣୀ ଶୋଭା ଝଟକ ଜ୍ୟୋତି
ଖଞ୍ଜନ ନୟନେ ଅଞ୍ଜନ ଭାଲେ ସିନ୍ଦୂର ବିନ୍ଦୁ
ସୁବର୍ଣ୍ଣ ମେଘ କି ଉଇଁଛି ବାଳ କୁମୁଦ ବନ୍ଧୁ
ଭ୍ରମର ନିନ୍ଦିତ କୁଞ୍ଚିତ ବେଣୀ ଗୁଚ୍ଛ କୁନ୍ତଳେ
ବିକଶଇ ସାର ସୁଷମା ବେଢ଼ା ବକୁଳ ମାଳେ ।
କିରୀଟ ମୁକୁଟ ଝଟକ ଶୋଭା ତହିଁ ଉପର
ସୁବର୍ଣ୍ଣ ଶିଖରୀ ଶିଖରେ କି ଅବା ଦିବାକର ।
ଲମ୍ବିଛି ସର୍ବାଙ୍ଗେ ଚନ୍ଦନ ବିଲ୍ୱ ମନ୍ଦାର ମାଳ,
ଶୋଭା ସରେ ଡୁବି ରହିଛି ଭକ୍ତ ଚିତ୍ତ ମରାଳ ।
ସଂସାର ସୁଷମା ଶରଣ ଯାଇ ଚରଣ ତଳେ
କି ବର୍ଣ୍ଣିବ ରୂପ ମାଧୁର୍ଯ୍ୟ ଜନ୍ମି ଅବନୀ ତଳେ ।

ତୋହର ଉପମା ତୁମ୍ଭ ମା ଜୟ ସିଂହବାହିନୀ
ଅଭକ୍ତ କୁଳର କୃତାନ୍ତ ଭକ୍ତ ଚିତ୍ତ ତୋଷିଣୀ ।
ଦୁରନ୍ତ ଦଇତ ମହିଷାସୁର ପ୍ରବଳ ତାପେ
ତାପିତ ଦେବଙ୍କ ଆତଙ୍କ ଦୂରେ ଖଣ୍ଡିଲୁ ଆପେ
ଚଣ୍ଡୀ ରୂପମଣ୍ଡାଢ ସଙ୍ଗତେ ବିନ୍ଧ୍ୟଗିରି ବାସିନୀ,
ଅଯୋନିସମ୍ଭବ ପ୍ରକାଶ ହେଲୁ ଆଦ୍ୟଜନନୀ ।
ଚଣ୍ଡ ମୁଣ୍ଡ ଶୁମ୍ଭ ନିଶୁମ୍ଭ ରକ୍ତବୀର୍ଯ୍ୟ ଆଦିର
ଆଦ୍ୟଶକ୍ତି ଶକ୍ତି ବିସ୍ତାରି ଦୈତ୍ୟ କଲୁ ସଂହାର ।
ବ୍ରହ୍ମା ବରେ ମହିଷାସୁର ତ୍ରିଭୁବନ ବିଜୟୀ
କାମାତୁରେ ହେଲା ପ୍ରବେଶ ତୋର ସମ୍ମୁଖରେ ଯାଇ
ତା ଭୁଲେ ସମର ଆଚରି ଚଣ୍ଡୀ ରୂପମଣ୍ଡା ମେଳେ
ଅନେକ ତୂଣୀରୁ ଶର ଯେ ଶେଷ ହୋଇଲା ତାଳେ ।
ଦଶାସ୍ୟା ରକ୍ତଦଶନା ମୁକ୍ତକେଶୀ କରାଳ ।
ରୂପିଲୁ ମହିଷା ଦଇତ ନେତ୍ର ଅନଳ ଜ୍ୱାଳ ।
ରଣେ ଜୟକଲୁ ଆଶ୍ୱିନ ଶୁକ୍ଳ ଦଶମୀ ତିଥି,
ବିଜୟା ଦଶମୀ କ୍ଷିତିରେ ତେଣୁ ହୋଇଲା ଖ୍ୟାତି ।
ସତ୍ୟେ ସତ୍ୟବ୍ରତ ନୈଷଧରେ ରାମ ଚନ୍ଦ୍ରଲେ ମନେ,
ରାମଚଣ୍ଡୀ ନାମ ବହିଲୁ ଦୁଃଖୀ ଦୁଃଖ ନାଶନେ ।୨୦
ଅନନ୍ତ ଶୟନେ ଶ୍ରୀହରି ତୋତେ କଲେ ଆଦେଶ
କଂସ ବନ୍ଦୀଘରେ ଦ୍ୱାପରେ ଆସି ହେଲୁ ପ୍ରବେଶ ।
ଶିଳାରେ ପିଟନ୍ତେ ଆକାଶ କରୁ ଅନ୍ତର ହୋଇ
ଶୂନ୍ୟେ ରହି ମୃତ୍ୟୁଭେଦଟି ତାକୁ ଦେଲୁ ବତାଇ ।
ଦୁର୍ଗତି ହରିବେ କଳିରେ ଦୁର୍ଗା ବୋଲାଉ ମାତ,
ଅଭୟ ଦାନରେ ଅଭୟା ସର୍ବ ଯୁଗରେ ଖ୍ୟାତ ।
ଜଗତ ମଙ୍ଗଳ କାରଣେ ସବ ମଙ୍ଗଳା ହେଉ,
ଗ୍ରାମେ ଗ୍ରାମେ ଗ୍ରାମଦେବତୀ ନାମେ ତୁ ପୂଜା ପାଉ ।

କାଳକା ବାଉଁଶି ମାଉଁଶି ପିତାଇଳୀ ଆବର
ସ୍ଥାନେ ସ୍ଥାନେ ନାମ ପ୍ରକାଶ ଏକୁଁ ଅନେକ ଠାର ।
ସମ୍ବଲପୁରରେ ରହିଣ ନାମ ସମଲେଶ୍ୱରୀ
ସୁବର୍ଣ୍ଣପୁରେ ନାମ ପ୍ରକାଶ ଅଭୟା ସୁରେଶ୍ୱରୀ ।
ପାଟଣେଶ୍ୱରୀଙ୍କୁ ବୋଲନ୍ତି ପାଟଣାରେ ନିବାସ
ଯେ ତୋତେ ଯେ ଭାବେ ଭଜଇ ତାହାର ହୋଇ ତୁ ବଶ ।
ସାତ୍ତ୍ୱିକ ଶାକ୍ତିକ ଏ ବେନି ଭାବେ ଭକତଗଣ
ପଞ୍ଚମକାରରେ ସେବନ୍ତି ତୋ ଅଭୟ ଚରଣ ।
ଅହିଂସ ପରମ ଧରମେ କେତେ ଲଗାଉ କାଳ
ମାଆ ଗୋ ତୋ ଆଗେ ଛେଦିଲେ କେତେ ନିରୀହ ଛେଳ ।
ମାଆ ଛୁଡ଼ି ତେଣୁ ମାଉସୀ ସେବା କଲେ ଯୁକତେ
ଏ ମାଗେଁ ସେବିଲେ କେସନେ ମାତା ଲଭିବେ ତୋତେ
ତାର ମା ତାରିଣୀ ତାରୁ ଗୋ ତୋଠ ଗଲ ଶରଣ
ଦ୍ୱିଜ ଗୋବିନ୍ଦଚନ୍ଦ୍ରେ ଦିଅ ତୋ ପଦ୍ମ ଚରଣ ।୩।

## ଦ୍ୱିତୀୟ ଛାନ୍ଦ

ଶୁଣ ଆଗୋ ମାଆ ଭଜଣୀ ଓଷାଇତି ସେବକ,
ମହାଷ୍ଟମୀର ଏ ଚରିତ ଷସୁ ହେବପାତକ ।
ଶ୍ରାବଣେ ଏ ବ୍ରତ ସୁଫଳ ଲଭ ହେବ ତତକ୍ଷଣ
ଧନ ପୁତ୍ରବନ୍ତ ହୋଇବ ଯଶ ଆୟୁ ବର୍ଦ୍ଧନ ॥
ଭାଇର ମଙ୍ଗଳ ମନାସି ଶୁଣ ଅଷ୍ଟମୀ କଥା
ଅରିଷ୍ଟ ତୁଟିବ ଭାଇର ଯିବ ଏ ଭବ ବ୍ୟଥା।
ଜନମୁଁ ମୁ ଦୁଖ ଅଟଇ ମାଆ କୃପାରୁ ସିନା;
ଅଷ୍ଟମୀ ଦରତ କରୁଛି, ହୋଇଁ ନିଷ୍ଠଳ ମନା ।
ପିତା ସତ୍ୟ ପାଳି ଶ୍ରୀରାମ ଭାଇ ଭାରଯା ଘେନ,
ବନବାସ ହେଲେ ବରଜ ଅଯୋଧ୍ୟା ରାଜଧାନୀ ।

ପଞ୍ଚବଟୀ ବନେ କୁଟୀର ରଚି କଲେ ନିବାସ
ଜନକ ନନ୍ଦିନୀ ଚୋରାଇ ନେଲା ଦୁଷ୍ଟ ରାକ୍ଷସ ।
ବୁଲି ବୁଲି ବେନି ସୋଦର ଭାଲୁ ବାନର ମେଳେ,
ସାଗରରେ ସେତୁ ବାନ୍ଧିଲେ ସୀତା ଉଦ୍ଧାର ଛଳେ ।
ସୁବଳ ପର୍ବତେ ଶ୍ରୀରାମ ସ୍ଥାପି କପି ଶିବିର,
ବିଭୀଷଣେ ରଖି ଶରଣ ଯୁଦ୍ଧେ ହେଲେ ବାହାର
ହନୁ ଅଙ୍ଗଦ ନଳ ନୀଳ ସୁଗ୍ରୀ ସଙ୍ଗେ ଲକ୍ଷ୍ମଣ,
ହେଲେ ଦୈତ୍ୟବଳ ନାଶିଲେ ରଣେ ସେ ବିଚକ୍ଷଣ ।
ମହୀରାବଣ ବୀରବାହୁ କୁମ୍ଭକର୍ଣ୍ଣ ଆଉର
ସମରେ ପଡ଼ିଲେ ସୁବାହୁ ଇନ୍ଦ୍ରଜିତ କୁମର ।
ଅବଶେଷେ ଯୁଦ୍ଧେ ବାହାରି ଆସି ବିଶ୍ରବାସୁତ,
ଦଶବାର ଶିର ଛେଦିଲେ ଶରେ ଜଗତ ନାଥ ।
ବାର ବାର ଶିର ବାହାରି ଦେଖି ଚକିତ ହେଲେ,
ହନୁମାନ ଡାକି ଶ୍ରୀମୁଖେ ରାମ ଆଦେଶ ଦେଲେ ।
ଦୁର୍ଗତିନାଶିନୀ ଦୁର୍ଗାଙ୍କ ପାଦପଦ୍ମ ଯୁଗଳ,
ପୂଜିବି ବନ୍ଦନ ଆଣ ଯା ଦେବୀ ହ୍ରଦୁ କମଳ ।
ଗୋଟିଗୋଟି କରି ଲକ୍ଷେକ ଶତଦଳ କମଳ,
ସ୍ଥିର ମନେ ହେକ ଆଣିବୁ ଗଡ଼ ନ ଯାଉଁ ବେଳ ।
ପ୍ରଭୁ ଆଜ୍ଞା ଶିରେ ଧରିଣ ହନୁ ବିନମି ଗଲା,
ଦେବୀ ହ୍ରଦତଟେ ଯାଇଣ ବେଗେ ପ୍ରବେଶ ହେଲା ।
ଗୋଟି ଗୋଟି କରି ଲକ୍ଷେକ ପଦ୍ମ ତୋଳି ମାରୁତି,
ଶ୍ରୀରାମ ନିକଟେ ପ୍ରବେଶ ହେଲା ଆସି ଝଟତି ।
ଜଗତ ଜନନୀ ଶ୍ରୀରାମ ମନ ବଢ଼ିବା ପାଇଁ,
ଅଦୃଶ୍ୟେ ହରିଲେ ଫୁଲେକ ଶୂନ୍ୟ ମାର୍ଗରେ ଥାଇ ।
ପଦ୍ମ ଫୁଲ ଦେଖି ଶ୍ରୀରାମ ମନେ ହରଷ ହେଲେ,
ଦଶଭୁଜା ପୂଜା ବିଧାନମାନ ଯୋଗାଡ଼ କଲେ ।

ପୂର୍ଣ୍ଣକୁମ୍ଭ ଚୂତ ପଲ୍ଲବ ନାରିକେଳ ସ୍ଥାପିଲେ, 
ତଦନ୍ତରେ କପି ସେନା ଏ ଜାନୁପାତି ବସିଲେ ।
ଲକ୍ଷ୍ମଣ ସଙ୍ଗତେ ଶ୍ରୀରାମ ବସି ପଦ୍ମ ଆସନେ
ଦୁର୍ଗାପାଦେ ସ୍ତୁତି କରନ୍ତି ପୂତ ବେଦ ବଚନେ ।୨।
ଦୁର୍ବାକ୍ଷତ ବିଲ୍ୱ ପଲ୍ଲବ ସଙ୍ଗେ ବାସ ଚନ୍ଦନ,
ନିବେଦ୍ଧ କରନ୍ତି ଜଗତ ଜନନୀ ଆବାହନ ।
ମାଳ ମାଳ କରି ମନ୍ଦାର ମାଳ ଦେଲେ ଲମ୍ବାଇ
ଭକତ ବତ୍ସଳା ଦେଖିଲେ ଅନ୍ତରୀକ୍ଷରେ ଥାଇ ।
ଧୂପ ଦୀପ ଅନ୍ତେ ନୈବେଦ୍ୟ ପକ୍ୱ ରମ୍ଭା କଦଳୀ,
ସମର୍ପିଣ ନତ ମସ୍ତକେ ଦେଲେ ପୁଷ୍ପ ଅଞ୍ଜଳି ।
ଚଣ୍ଡିକା ଚରଣ ଯୁଗଳ ରାମ ହୃଦରେ ଧ୍ୟାୟି
ଗୋଟି ଗୋଟି ଗଣି କ୍ରମେଣ ସବୁ ଦେଲେ ଚଢ଼ାଇ ।
ଲକ୍ଷେ ପଦ୍ମଫୁଲ୍ଲ ଗୋଟିଏ ଫୁଲ ହୋଇଲା ଊଣା
ବିସ୍ମୟ ହୋଇଲେ ଶ୍ରୀରାମ ଦେଖି କଲେ ଛଳନା ।
ହନୁମାନ ମୁଖ ଅନାଇ ରାମ କହନ୍ତି ଧୀରେ,
ଏକ ଲକ୍ଷ ପଦ୍ମ ଗୋଟିଏ ଊଣା ହେଲା ବିଧିରେ ।
କରଯୋଡ଼ି ତହୁଁ ବିନୟେ ଭାଷେ ପବନ ସୁତ,
ତବ ଆଜ୍ଞା ଶିରେ ଧରିଣ ଗଲି ହେ ରଘୁନାଥ ।
ଦେଖି ହୃଦୁ ଦେବ ଲକ୍ଷେକ ପଦ୍ମ ଆଣିଲି ଗଣି,
ଊଣା ହେଲା ଫୁଲ କପରି ନ ପାରିଲି ତ ଜାଣି ।
କୃପା ବହି ଦାସେ ଶ୍ରୀମୁଖ ହେଉ ଆଦେଶ ବାରେ,
ପଦ୍ମବନେ ଯାଇ ଫୁଲେକ ଘେନି ଆସିବି ଖରେ ।
ମନେ ହସି ରାମ ଭାଷିଲେ ମନେ ନ ଭାଳ କିଛି,
ଘଟିଥିବା ପଦ୍ମ ପୂରଣ ପାଇଁ ଉପାୟ ଅଛି ।୩।
ଦାସଠାରେ ଛନ୍ଦ କଲେଣି ନିଶ୍ଚେ ଜଗତମାତ,
ଆଚରିଲେ ମାୟା ଅଭୟା ଏହା ହୁଏ ପ୍ରକ୍ଷତ ।୩୧।

ପଦ୍ମ ନୟନତ ବୋଲନ୍ତି ମୋତେ ଜଗତଯାକ,
ପଦ୍ମନେତ୍ର ନାମ ମୋହର ଆଜି ହେଲା ସାର୍ଥକ ।
କମଳ ଅଭାବେ କମଳ ନେତ୍ର ମାତୃ ଚରଣେ,
ଅରପିଣ ପୂଜା ସାରିବ ଅତି ଆନନ୍ଦେ ମନେ ।
ଏତେ କହି ରାମ ତୂଣୀରୁ କାଢି ସୁତୀକ୍ଷଣ ଶର,
ପଙ୍କଜ ନୟନ ଖୋଳିବା ପାଇଁ ହେଲେ ବାହାର ।
ଶର ଯେମନ ଚକ୍ଷୁ ଖୋଳିବା ବେଳେ ଜଗତମାତ,
ଉଭା ହୋଇ ଦେବୀ ଧଇଲେ ବେଗେ ଶ୍ରୀରାମ ହସ୍ତ ।
ମୃଦୁ ମନ୍ଦ ହସି ଭାଷନ୍ତି ଦେବୀ ମଧୁର ଗୀର,
କ୍ଷାନ୍ତ ହୁଅ ବତ୍ସ ବିପଦେ ଏତେ ନୁହ ଅଧୀର ।
ବ୍ରହ୍ମା ବରେ ବଳୀ ରାବଣ ତ୍ରିଭୁବନ ବିଜୟୀ,
ବ୍ରହ୍ମାସ୍ତ୍ରରେ ବଧି ରାବଣ ଉଦ୍ଧାର ବଇଦେହୀ ।
ଦୁଷ୍ଟ ନାଶ ଶିଷ୍ଟ ପାଳନ ସୃଷ୍ଟିକର ଅବନୀ,
ଆଜିଠାରୁ ମୁହିଁ ତେଜିଲି ଏ ଲଙ୍କା ରାଜଧାନୀ ।
ସ୍ତବ ଦେଖି ବଶ ହୋଇଲି ବତ୍ସ ସେବା ବିଧିରେ ।
ଆଜିଁ ଏ ଦିବସ ପ୍ରସିଦ୍ଧ ରହୁ କ୍ଷିତି ମଧ୍ୟରେ ।
ମହାଷ୍ଟମୀ ନାମେ ଆଶ୍ୱିନ, ଶୁକ୍ଳ ଅଷ୍ଟମୀ ଦିନ
ଯେ ମୋତେ ପୂଜିବ ଲଭିବ ଅନ୍ତେ ମୋର ଚରଣ ।
ଧନ ଜନ ଯଶ ଆୟୁଷ ବୃଦ୍ଧି ହୋଇବ ଶୀଘ୍ର,
ଚତୁର୍ବର୍ଗ ଫଳ ଲଭିବେ ଶ୍ରଦ୍ଧା ଭକତି କରି ।
ଅପୁତ୍ରିକ ସ୍ତ୍ରୀ ଶ୍ରଦ୍ଧାରେ ମୋତେ ପୂଜିବେ ଯେବେ,
ବିଷ୍ଣୁଭକ୍ତ ପୁତ୍ର କୋଳରେ ଜାତ ହୋଇବ ତେବେ ।
ଭାଇମାନଙ୍କର ମଙ୍ଗଳ ମନେ କାମନା କରି,
ବ୍ରତ ଚଢ଼ାଇଲେ ଚରଣେ ଭାଇ ଅରିଷ୍ଟ ହରି ।
ଶଏଆଠ ଦୁବ ଅକ୍ଷତ ଦେଲେ ରହି ଉପାସ
ଶଏଆଠ ବର୍ଷ ଭାଇର ବୃଦ୍ଧି ହେବ ଆୟୁଷ ।

ମନ ବଢ଼ିବାକୁ ହରଲ ଗୁପତେ ପଦ୍ମଫୁଲ,
କୁଷ୍ମାଣ୍ଡ ଫଳଟି ହୋଇବ ସ୍ୱର୍ଣ୍ଣ କମଳ ତୁଲ ।
ମହା ଅଷ୍ଟମୀରେ ଏ ଫୂଲ ମୋର ଚରଣେ ଦେଲେ
ଲକ୍ଷେ ସ୍ୱର୍ଣ୍ଣ ପଦ୍ମଫୁଲର ତୁଲ ହୋଇବ ଭଲେ ।
ଖୋଜୁଥିଲେ ଶରେ ନୟନ ସୀତା ଉଦ୍ଧାର ପାଇଁ,
ସୀତାଫଳ ଆଉ ମୋହର ବଡ଼ ଶରଧା ହୋଇ ।
ଅଇସୁଲକ୍ଷଣୀ ସ୍ତ୍ରିଏ ଉପବାସରେ ରହି,
ସୀତାଫଳ ଯେବେ ଚରଣ ମୋର ଦେବେ ଚଢ଼ାଇ ।
ଦୁଃଖ ଶନ୍ତା ଯାଇ ଘରର ସୁଖ ବୃଦ୍ଧି ହୋଇବ,
ରୋଗ ଶୋକ ମୋର ପ୍ରସାଦୁ ତାର ଦୂରେ ରହିବ ।
ନାରକେଳ ଚମ୍ପା କଦଳୀ ଆଖୁ ମୋହର ପ୍ରିୟ
ଏହା ଦେଇ ମୋତେ ପୂଜିଲେ ସବୁ ଅନିଷ୍ଟ କ୍ଷୟ ।୪୦।
ଶୁଣିଣ ଶ୍ରୀରାମ ଲକ୍ଷ୍ମଣ କପି ସେନା ଆଉର,
ସାଷ୍ଟାଙ୍ଗେ ନମିଲେ ଅଭୟା ପଦ୍ମପାଦ ତଳର ।
ସିଦ୍ଧ ହେଉ ମନକାମନା ଦେବୀ ଅଶିଷ କଲେ,
ବ୍ରହ୍ମଶର ଭେଦ ଶ୍ରୀମୁଖେ ବିସ୍ତାରଣ କହିଲେ ।
ଏହି ରୂପେ ହେଲା ଅଷ୍ଟମୀ ଜଗତରେ ପ୍ରକାଶ,
ଦଶଭୂଜା ରାମ ପୂଜିଲେ ଆସି ହୋଇଲେ ବଶ ।
ଓଷାଇତମାନେ କଦଳୀ ନାରକେଳ ଆବର,
ସୀତାଫଳ, ପାଣିକଖାରୁ ଫୁଲ ବେଲପତର ।
ଦୁର୍ବାକ୍ଷତ ସଙ୍ଗେ ବରତମାନ ଦିଅ ଚଢ଼ାଇ
ହୁଳହୁଳ ଦିଅ ସୁଦୟା କରିବେ ମହାମାୟୀ ।
ଛପନ ପଦରେ ଦେଖିସ ଗ୍ରନ୍ଥ ସମ୍ପୂର୍ଣ୍ଣ ହେଲା,
ଦୁର୍ଗାପଦ ଧ୍ୟାୟି ଗୋବିନ୍ଦଚନ୍ଦ୍ର ଗୀତେ କହିଲା ।୫୬।

—o—

# ତୃତୀୟ ଛାନ୍ଦ

ଚମ୍ପାବତୀ ନାମେ ନଗରୀ ରାଜା ବିକ୍ରମସେନ,
ଅତି ଧାର୍ମିକ ସେ ପାଳନ୍ତି ପ୍ରଜା ପୁତ୍ର ସମାନ ।
ପାଟ ମହାଦେଈ ତାଙ୍କର ନାମ ମଦନାବତୀ,
ସର୍ବ ସୁଲକ୍ଷଣୀ ଅରୁଣା ନାମେ ଏକ ଦୁହିତୀ ।
ରମ୍ଭା ଜିଣି ରୂପ, କୁମାରୀ ପୂର୍ଣ୍ଣ ଷୋଳ ବରଷ,
ସ୍ୱର୍ଗ ଅପସରୀ ଆସିଣ କିବା ମର୍ତ୍ତ୍ୟେ ପ୍ରକାଶ ।
ଯଉବନ ଚିହ୍ନ ସକଳ ଅଙ୍ଗେ ଦେଲାଣି ଦେଖା,
ରଙ୍ଗେ ସଖୀ ସଙ୍ଗେ ବିହରେ ଚିତ୍ତେ ନଥାଇ ଧକା ।
ଦିବସେ କେମା ଧନେ ବଉଳ ଗଡ଼ ଚାଲିଣି ବେଳ,
ବୁଲି ବୁଲି ଉପବନୁ ଗୋ ବାଛି ତୋଳିବା ଫୁଲ
ହରଷରେ ରାଜ ଉଦ୍ୟାନେ ପରବେଶ ସରବେ,
ଫୁଲମାନ ତୋଳି ଖେଳନ୍ତି ଯଉବନ ଗରବେ ।
ବୀରସେନ ନାମେ ସୁଧୀର ରାଜ ମନ୍ତ୍ରୀ ପ୍ରବର,
ପତ୍ନୀ ନାମ ଅଟେ କମଳା ସେବେ ଦୁର୍ଗାପଯର ।
ମତିଗତି ଥାଇ ବେନଙ୍କ ସଦା ଅମ୍ବିକା ପଦେ,
ପୁତ୍ରକନ୍ୟା ଦୁଇ ଲଭିଲେ ଭଗବତୀ ପ୍ରସାଦେ ।
ମାଳତୀ ମଦନ ସୁନ୍ଦର ଅଟେ ନାମ ତାଙ୍କର
ବାଳକାଳୁ ଦୁହେଁ ସେବନ୍ତି ଭଗବତୀ ପୟର ।
ନିର୍ମଳ ମନରେ ଅଭୟା ପଦେ ଭକତି କରି,
ଜନନୀ ପ୍ରସାଦୁଁ ଥାଆନ୍ତି ରୋଗ ଶୋକ ପାଶୋରି ।
ମଦନସୁନ୍ଦର ଆସଇ ଅଶ୍ୱ ଉପରେ ଚଢ଼ି,
ସୁକୁମାର ଅଙ୍ଗ ଭୂଷଣମାନ ଯାଉଛି ଜଡ଼ି ।
ବୁଲି ବୁଲି ଶ୍ରମେ ମଦନ ତୃଷା ଆତୁର ହୋଇ,
ଜଳ ପାନ ଆଶେ ପ୍ରବେଶ ରାଜ ଉଦ୍ୟାନେ ଯାଇ ।

ମନ୍ତ୍ରୀ-ସୁତ ତୃଷା ଆତୁରେ ତହିଁ ମିଳିଲା ଆସି,
ଦେଖିଲେ ମରତେ ଉଇଁଛି ପୂର୍ଣ୍ଣ ଶାରଦଶଶୀ ।
ବିସ୍ମୟେ ଅରୁଣ ନନ୍ଦିତ ରୂପ ସରସୀ ଜଳ,
ପାନ କଲା ତୃଷା ଆତୁର ତା ନୟନ ଯୁଗଳ ।
ମଦନସୁନ୍ଦର ସୁନ୍ଦର ରୂପ ଦେଖି ସୁନ୍ଦରୀ,
ମନେ ମନେ ହୃଦ ଆସନେ ବର ନେଲାଣି ବରି ।
ସ୍ମରଚକ୍ଷୁ ସହୁଁ ଏକଥେ ଆସି ହେଲା ମିଳନ,
ହସିଣ ଅରୁଣା ପୁଚ୍ଛିଲେ ଆଗମନ କାରଣ ।
ମଦନସୁନ୍ଦର ମଧୁରେ ଭାଷେ ପିଇବ ଜଳ
ଅରୁଣା କରୁଣା ଘୁଞ୍ଚାଇ କହେ ଲାଗିବ ମୂଲ ।
ସୁବର୍ଣ୍ଣ ମୁଦ୍ରିକା ମଦନ ହେମା ହସ୍ତରେ ଦେଲା,
ରାଜହେମା ଦେଲା ଲମ୍ବାଇ ପ୍ରୀତିବରଣମାଳା ।
କିଶୋର କିଶୋରୀ ରୂପରେ ପ୍ରଣୟକୁ ରଚିଲେ,
ସଙ୍ଗ ସହଚରୀ ବିଗୃହ ପରମାଦ ଗଣିଲେ ।୨୦।
ଦିନୁ ଦିନୁ କ୍ରମେ ବଢ଼ିଲା ପ୍ରୀତି ଲୀଳା ଗୁପତ
ମନେ ଆନ ଲୀଳା ଉଆଣ କଲେ ଜଗତମାତ ।
ମହାରାଣୀ ଦିନେ କହିଲେ ରାଜା ମୁଖ ଅନାଇ,
ଯୁବା ଝିଅ ଘରେ ରଖିବା ଅବିହିତ ଅଟଇ ।
ବିବାହ ବୟସ ଝିଅର ଆସି ହେଲା ପ୍ରବେଶ,
ଝିଅ ଯୋଗ୍ୟବର ବହନ ବୁଝ ହେ ନରକେଶ ।
କହିଲେ ନୃପତି ହେମାର ଶୁଭ ବିବାହ ପାଇଁ,
ରୂପେ ଗୁଣେ ବାଛି ରଖିଛି ସୁକୁମାର ଜୁଆଇଁ ।
କୁମାରୀ ପାଟଣା ରାଇଜେ ହେମା ଶ୍ୱଶୁର ଘର,
ମାଘ ଶୁକ୍ଳ ଶୁଭ ପଞ୍ଚମୀ ଲଗ୍ନେ ବରିବା ବର ।
ବାହାଘର କଥା ଶୁଣିଣ ହେମା ଆସିଲା ଧାଇଁ
କହିଲା ମାଆଲୋ ଆନରେ ବିଭା ହୋଇବି ନାହିଁ ।

ଯଦି କନ୍ଦୁ ଝିଅ ରାଇଜେ ରହିବ କରିବ ଘର
ଜୁଆଇଁ କରିଣ ବନ୍ଧନ ବରି ମଦନ ବୀର ।
କହିଲେ ରାଜନ ଝିଅଲୋ ଶୁଣ ମୋର ବଚନ,
ମନ୍ତ୍ରୀପଦେ ତାର ପିଅର ଖଟେ ମୋର ଚରଣ ।
ରାଜଜେମା ହେବ ବିବାହ ଛୁର ଗୃକରଠାକୁ,
ଅବିଶ୍ୱତ କଥା ସିନା ଲୋ ଅପଖ୍ୟାତି କୁଳକୁ ।
ଆନେ ବର ବାଛ ଜେମା ଲୋ ଦେଖି ରାଜକୁମାର,
ଜେମା କହେ ନଷ୍ଟେ ମରିବ ତେବେ ଖାଇ ଜହର ।
ଶୁଣିଣ ରାଜନ ଅନ୍ତରେ ହେଲେ ଚିନ୍ତିତ ଅତି
ଯେତେ ବୁଝାଇଲେ ଝିଅର ଏକା ମଦନ ପତି ।
କଢ଼ିଫୁଲ ଫୁଟି ବିକାଶ କଲା ମହକ ବାସ
ଦାସୀ ମୁଖୁ ରାଜା ଶୁଣିଲେ ଗୁପ୍ତ ପ୍ରୀତି ସନ୍ଦେଶ ।
ବିଚାରିଲେ ଝିଅ କୂଳରେ ଦେଲା ଲଗାଇ କାଳି,
ଲୋକ ଅପବାଦ କଥାକୁ ମନେ ବସିଲେ ଭାଳି ।
ମଦନସୁନ୍ଦର ପାଇଁ କି ଝିଅ ବସିଛି ରୁଷି,
ମରାଇବି ମନ୍ତ୍ରୀ କୁମର ଗୁପ୍ତ ଘାତକ ପେଷି ।
ମଦନସୁନ୍ଦର ରକତ କାଳି କରିବ ଟିକା,
କଳଙ୍କ ମେଣ୍ଟିବ କୁଳର ଯିବ ହୃଦସ୍ପୃ-ଦକା ।
ମନ୍ତ୍ରୀ ଜାନ ନୋହୁ ପ୍ରଭାତୁ ତାକୁ ପାରିଧି ପାଇଁ
ଗୁପତେ ଘାତକ ସଙ୍ଗତେ ଦେବି ବନେ ପଠାଇ ।
ଭଲେ ମନ୍ତ୍ରୀ ସୁତ ମାରିବ ଜେମା ମଙ୍ଗଳ ପାଇଁ,
ବିଚାରି ନୃପତି ଶୋଇଲା ରତ୍ନପଲଙ୍କେ ଯାଇ ।
କାନ୍ଦି କହେ ପ୍ରିୟସଜନୀ ଆଗେ ସେ ଜେମାଦେଈ,
ଆନ କାହା ଗଳେ ବରଣମାଳା ଦେବି ଲୋ ସହି ?
ମଦନସୁନ୍ଦର ପଦେ ତ ଜୀବ ସାରିଛି ବିକ
ନାସ୍ତି କଲେ ପିତା ମରିବ ନିଷ୍ଟେ ଗରଳ ଢୋକ ।

ସଖୀ ଏକ ଭାଷେ ଅରୁଣା ଶୁଣ ମୋର ଉତ୍ତର,
ହର-ମନୋହରୀ ହରିବେ ମନ ବେଦନା ତୋର ।
କାଲି ମହାଷ୍ଟମୀ ବରତ ହେବ ମାଆର ପୂଜା,
ହେବ ମନବାଞ୍ଛା ପୂରଣ ସେବଲେ ଦଶଭୁଜା ।
ଅମ୍ବିକା ପ୍ରସାଦେ ଲଭିବୁ ସଖୀ ମଦନ ବର,
ପ୍ରଭାତରୁ ପୂଜା ବିଧାନମାନ ଯୋଗାଡ଼ କର ।
ବସ୍ତ୍ରାଳଣ ପାଦ ତୃଷ୍ଣାପୂ ଛାନ୍ଦ ହେଲା ପୂରଣ
ଦ୍ୱିଜ ଗୋବିନ୍ଦଚନ୍ଦ୍ର କହି ଦୁର୍ଗା ପାଦେ ଶରଣ ।

## ଚତୁର୍ଥ ଛାନ୍ଦ

ନିଶି ଶେଷେ ଉଷା ନବୀନ ସାଜେ ମଣ୍ଡିଲା ଧରା,
ପ୍ରକୃତି ସୁନ୍ଦରୀ ମେଲାଇ ଦେଲା ଶୋଭା ପସରା ।
କାକ ରବ ଦେଲା ବସିଣ ବାଡ଼ ସଜନା ଡାଳେ,
ଗେହ୍ଲାଇ ଝିଅକୁ କମଳା ଆଣି ଧଇଲେ କୋଳେ ।
ମୃଦୁ ମୃଦୁ ହସି କହନ୍ତି କରେ ଆଉଁସି ଶିର,
ଆଜ ଦୁଇଦିନେ ଯିବୁ ଲୋ ମାଆ ଶ୍ୱଶୁର ଘର ।
କେତେ ନିଦ ଯାଉ ସକାଳ ଆସି ହେଲାଣି ପରା,
ହସିବେ ଲୋ ଶାଶୂ ନଣନ୍ଦ କେତେ କରି ଠାପରା ।
ନ ଶିଖିବୁ ଯଦି ଆଜୁଁ ଲୋ ଉଠକରା ଆଗୁର,
ଶାଶୂଘର କଥା ଶୁଣିବା ସିନା ହୋଇବ ସାର ।
ମାଆଘର ଦୁଇଦିନିଆ ସେତ ବାଳକ ବତା
ବସିଣ ମାଳତୀ ନୁଆଁଇ ଦେଲା ତଳକୁ ମଥା ।
କହିଲେ ଜନନୀ ଆଜି ଲୋ ମହା ଅଷ୍ଟମୀ ବ୍ରତ,
ଉପବାସ ଦୁର୍ଗା ପୂଜିଲେ ହୁଏ ଭାଇର ହିତ ।
ମଦନସୁନ୍ଦର ଭାଇର ଶୁଭ କାମନା କରି,
ଉପବାସେ ରହି ନିର୍ମଳ ମନେ ସେବେ ଶଙ୍କରୀ ।

ଭଉଣୀର ଭାଇ ଭରସା କଥା ସଂସାରେ ଅଛି,
ଭାଇ ସୁଖେ ଥିଲେ ତୋହର ଜଣା ନୋହିବ କିଛି ॥
ସମ୍ପଦେ ବିପଦେ ସଂସାରେ ଭାଇ ହୁଅଇ ସାହା,
ଭାଇ ସିନା ସୁଖେ ଦୁଃଖେଲେ ହେବ ପଛରେ ଠିଆ ।
ଭାଇକୁ ଭଗାରି ବୋଲନ୍ତି ଅତି ମୂରୁଖ ପଣେ,
ଭାଇ ବିନା ଭବେ ଭରସା ଆଉ କେ ନାହିଁ ଜଣେ ।
ମନ କଥା ଭାଇ ଜାଣଇ ବରଷକରେ ଥରେ,
ଦୁଆର ମଡ଼ାଇ ସଂସାରେ ମୁହଁ ଉଜ୍ଜ୍ୱଳ କରେ ।
ଦୁର୍ଗତି ନାଶିନୀ ଦୁର୍ଗାଙ୍କ ପଦ ସେବିବୁ ଯେବେ,
ଦୁର୍ଗା ରଖିଥିବେ ଭାଇଙ୍କ ତୋର ସରବ ଶୁଭେ ।
ମାଳତୀ କହୁଛି ମାଆ ଗୋ ବ୍ରତ ପାଳିବି ମୁହିଁ,
ଉପବାସେ ବିଧିବିଧାନ ମୋତେ ଦିଅ ବତାଇ ।
କୋମଳ ବଚନେ କମଳା କହୁଅଛି ତିଆରି,
ଫୁଲ ଫଳ ଆଠ ବର୍ଣ୍ଣର ଆଣି ଯତନ କରି ।
ଶଏଆଠ ଦୁବ ନିର୍ମଳ ସ୍ଥାନୁ ତୋଳି ଆଣିବୁ,
ଶଏଆଠ ଉଆ ଚାଉଳ ବାଛି ଯତ୍ନେ ରଖିବୁ ।
ଦେବଙ୍କୁ ତୁଳସୀ ଦେବୀଙ୍କ ଯୋଗ୍ୟ ଦହନା ଡାଳ,
ଆଣିବୁ ଅଁଳା ସଙ୍ଗତେ ଶହେ ବେଲପତର ।
ସ୍ନାନ ପାଇଁ ଯିବୁ ହଳଦୀ ବଟା ଅଁଳା ନେଇ,
ଘାଟ ପୂଜା ବିଧି ଝିଅ ଲୋ କହୁଅଛି ବୁଝାଇ ।
ବାଲୁକା ବେଦିଏ ସ୍ଥାପିବୁ ଦୁର୍ଗା ପତ୍ରର ଧାଡ଼ି,
କାଠ ଗଛଖଣ୍ଡ ପୋତିବୁ ତାର ଉପରେ ନେଇ ।
ହଳଦୀ ଅରୁଆ ଚାଉଳ ଆଗେ ବନ୍ଦାଇଦେବୁ,
ଫୁଲ ସଙ୍ଗେ ଦେବୁ ଚଢ଼ାଇ ଚକ କାକୁଡ଼ି ସବୁ ।
ନାଭି ପରିମାଣ ଜଳରେ ବେଗେ ସ୍ନାହାନ ସାରି,
ଏକମୁହଁ ହୋଇ ଘରକୁ ଝିଅ ଆସିବୁ ଫେରି ।

ଷନସାକ ରମ୍ଭା ଉପାସ ଗାଧ ବେନ ପ୍ରହରେ,
ପୂଜିବୁ ଅଭୟା ଚରଣ ଷୋଡ଼ଶ ଉପଚାରେ ।
ଦୂର୍ବାକ୍ଷତ ସଙ୍ଗେ ବରତ ବାନ୍ଧି ଦେବୁ ଚଢ଼ାଇ,
ଦ୍ୱିଜ ମୁଖୁ କଥା ଶୁଣିବୁ ଅତି ହରଷ ହୋଇ ।
ଦକ୍ଷିଣା ଦେଇଣ ଆଚାର୍ଯ୍ୟ ମନ ତୋଷିବୁ ଯେବେ,
କଥା ଶୁଣି ତୋର ସୁଫଳ ଲାଭ ହୋଇବ ତେବେ,
ପ୍ରଭାତୁ ଉଠିଣ ସ୍ନାନାଦି ପୂର୍ବପରି ସାରିବୁ,
ଦଧି ମଧୁ ସଙ୍ଗେ ମିଶାଇ ସାତଟଣା ଭକ୍ଷିବୁ ।
ପାଲଟିଣ ନୂଆ ବସନ ବ୍ରତ ପିନ୍ଧିବୁ ଯାଇ,
ଭାଇକୁ ଉତ୍ତମ ଆସନେ ଡାକି ଦେବୁ ବସାଇ ।
ଦୁର୍ଗାପଦେ ଚଢ଼ା ଅକ୍ଷତ ଦୁବ ଯତନେ ଆଣି,
ଭାଇ ଅଷ୍ଟଅଙ୍ଗ ଝାଡ଼ିବୁ ଥର ଶତେକ ଗଣି ।
କହିବୁ ଦୁର୍ଗେ ଗୋ ଭାଇର ମୋର ଅରିଷ୍ଟ ଯାଉ,
ସୁଦୟା କର ମୋ ଭାଇଟି ସର୍ବ ଶୁଭରେ ଥାଉ ।
ଗୋଟି ଗୋଟି କରି କମଳା ସବୁ ଦେଲେ ବତାଇ,
ବରତ ପାଳିଲା ମାଳତୀ ଅତି ହରଷ ହୋଇ ।
ଏଥୁଅନ୍ତେ ଆନ ଚରିତ ଶୁଣ ହୋଇ ହରଷ,
ଅଭୟା ମନ୍ଦିରେ ଅରୁଣା ଯାଇ ହେଲା ପ୍ରବେଶ ।୩୦।
ଧୂପ ଦୀପ ଫୁଲ ଚନ୍ଦନ ରକ୍ତ ମନ୍ଦାର ମାଳେ,
ପୂଜିଣ ଶରଣ ପଶିଲା ଦେବୀ ଚରଣ ତଳେ ।
ପଣତ ପ୍ରସାରି ଅରୁଣା ଭକ୍ତେ କରି ଭକତି,
କୃପାକର ମାତା ପ୍ରାପତ ହେଉ ମଦନ ପତି ।
ମଉନେ ଭାଷିଲେ ଅଭୟା ବାଞ୍ଛା ହେଉ ସଫଳ,
ପଣତେ ପଡ଼ିଲା ମାଆର ମଥା ମନ୍ଦାର ଫୁଲ ।
ଜନନୀ କରୁଣା ଅରୁଣା ମନେ ବିଚାର କରି,
ଘରକୁ ଫେରିଲା ହେନଣ ଫୁଲ ଭକତି ଭରି

ମହାରାଜା ଏଣେ ଘାତକ ସଙ୍ଗେ କଲେ ଷଡ୍ଯର,
ଜୁଆସବୁ ନେଲେ ଡକାଇ ସେ ମଦନସୁନ୍ଦର ।
କହିଲେ ଶରଧା କରୁଛି ଝିଅ ମୃଗ ମାଉଁସେ
ଧନୁଧର ବେଗେ ବନକୁ ଯାଅ ଶିକାର ଆଶେ ।
ଲୋକ ଜଣେ ଯିବ ସଙ୍ଗରେ ବନେ ନ ଯିବ ଏକା
ସାହା ହୋଇ ସଙ୍ଗେ ରହିବ ଚିତ୍ତେ ନ ଥିବ ଧକା
ଧନୁଶର ଧରି ହରଷେ ରାଜା ଆଦେଶ ପାଳି
ଘାତକ ସଙ୍ଗତେ କୁମର ଗଲା ବନକୁ ଚଳି ।
ନ ପାଇଲେ କେଉଁଠି ଶିକାର ବୁଲି ଜଙ୍ଗଲ ଯାକ
ତରକ ଦେଖିଣ ବୁଲିଲେ ପଛେ ପଛେ ଘାତକ ।
ନିବିଡ଼ ଅରଣ୍ୟ ମଧ୍ୟରେ ଦୁହେଁ ହେଲେ ପ୍ରବେଶ,
ନ ପାରିଲା ଜାଣି କୁମର ରାଜ କୁଟ ଆଦେଶ ।
ଜନଶୂନ୍ୟସ୍ଥାନ ଘାତକ ଯହୁଁ ନେତ୍ରେ ଦେଖିଲା,
ପଛରୁ କୁମର ବଧିବା ପାଇଁ ତିଆରି ହେଲା ।
ଅନ୍ତରାଳେ ଥାଇ ଅଭୟା ଦେଲେ ମାୟା ଭିଆଇ,
ବ୍ୟାଘ୍ର ଏକ ଧାଇଁ ଆସୁଛି ମୃଗ ପଛେ ଗୋଡ଼ାଇ ।୫୦।
ଏହା ଦେଖି ଦୁହେଁ ଅନ୍ତରେ ଲଭି ବହୁତ ଭୟ,
ମନେ ମନେ ହେଜ ବସିଲେ ଜୀବନର ଉପାୟ ।
ପ୍ରାଣର ବଳକେ ଘାତକ ତହୁଁ ଗଲା ଦଉଡ଼ି,
ମୃଗ ଛାଡ଼ି ବ୍ୟାଘ୍ର ଘାତକ ପରେ ବସିଲା ମାଡ଼ି ।
ବୁକୁ ବିଦାରିଣ ଦଶନେ ପାନ କଲା ରୁଧିର,
ମଦନ ପଛରେ ଲୁଚିଲା ମୃଗ ହୋଇ କାତର ।
ବିସ୍ମୟେ ମଦନ ସୁନ୍ଦର ତାକୁ ଧଇଲା ଯାଇ
ଘାତକକୁ ମାରି ଜୀବନେ ବ୍ୟାଘ୍ର ଗଲା ପଳାଇ ।

ରକ୍ଷିଲେ ଅଭୟା ଅଭୟ ଦାନେ ଦାସ ଜୀବନ,
ମୃଗ ଶିଶୁ ଘେନ ସଙ୍ଗରେ ବାହୁଡ଼ିଲା ମଦନ ।
ବିପଦ ନାଶିନ୍ ବିପଦେ ସାହା ହୋଇବେ ଯାକୁ,
ନର ସୁର ହୋଇ ବଇରୀ କଣ କରିବେ ତାକୁ ।
ଛୟାଳିଶ ପଦେ ଚତୁର୍ଥ ସ୍କନ୍ଧ ସମ୍ପୂର୍ଣ୍ଣ ହୋଇ,
ଦୁର୍ଗାପଦ ଧ୍ୟାୟୀ ଗୋବିନ୍ଦଚନ୍ଦ୍ର ଗୀତେ କହଇ ।୪୬

---

ଗୃହେ ଥାଇଁ ଏଣେ ରାଜନ ମନେ ଭ୍ରାନ୍ତି ବସି,
ଫେରି ନ ଆସିଲା ଘାତକ ସନ୍ଧ୍ୟା ହୋଇଲା ଆସି ।
କାର୍ଯ୍ୟ ହୋଇଥିବ ସଫଳ ଏଣୁ ବିଳମ୍ବ ତାର,
ମାରିଥିବ ନିଶ୍ଚେ ମଦନ ଘାତକର ହସ୍ତର ।
ପ୍ରକାଶ କରିବ ଶିକାର ଅର୍ଥେ ଚଳି ବନକୁ
ଘୋରବନେ ବାଘ ଖାଇଲା ମଦନ ସୁନ୍ଦରଙ୍କୁ ।
ଏସନ ସମୟେ ମୃଗ ଶିଶୁକୁ ଧରି ମଦନ,
ପରବେଶ ହେଲା ହରଷେ ଯହିଁ ବିଜେ ରାଜନ
ବିସ୍ତାରି କହିଲା କାନନେ ଘଟିଥିବା ବୃତ୍ତାନ୍ତ,
ଶୁଣିଣ ବିସ୍ମୟେ ରାଜନ ଦେଲେ କପାଳେ ହାତ ।
ଛଳ ବାକ୍ୟେ ପୁଣି କହିଲେ ବାବୁ ନ ଭଲ କଲୁ,
ନିୟତି ନିୟମ ଲଙ୍ଘିବା ସାଧ୍ୟ କାହାର ଅଛୁ ।
ଶ୍ରମ ଲଭିଅଛ ଶିକାର ଆଜେ ଭ୍ରମି କାନନେ
କ୍ଳାନ୍ତ ଦୂରକର ବସିଣ କ୍ଷଣେ ସୁଖ ଆସନେ ।
ବ୍ୟାଘ୍ର ମୁଖୁଁ ମୃଗ ଆଣିଛ ମନେ ବାନ୍ଧ ସାହସ,
ମୃଗ ପାଇ ଜେମା ମନରେ ନିଶ୍ଚେ ହେବ ହରଷ ।
ମନେ ବିଚାରିଲା ରାଜନ ବାର୍ତ୍ତାରେ ଗଲା ବରଷ,
ଭୋଜନେ ଭୁଞ୍ଜାଇ ଜହର ନିନାଶିବ ଅବଶ ।
ମିଷ୍ଟବାକ୍ୟେ ତୋଷି କୁମର ଅନ୍ତପୁରକୁ ଗଲେ
ଭୋଜନରେ ବିଷ ମିଶାଇ ହେନ ପ୍ରବେଶ ହେଲେ ।

କହିଲେ ହରଷେ ଦେଇଛନ୍ତି ଝିଅ ଏ ଉପହାର,
ପ୍ରୀତିଭରେ ତହିଁ ମଦନ ସବୁ କଲା ଆହାର ।
ବେଳୁବେଳୁ କାଳ ଗରଳ କ୍ରମେ ଅଇଲା ଘୋଟି
ଅଜ୍ଞାନେ ପଡ଼ିଲେ କୁମର ମଞ୍ଚ ଉପରେ ଲୋଟି
ଦେଖିଣ ରାଜନ ମନରେ ଅତି ହରଷ ହୋଇ
ଗୁପତେ ଦଶଆ ମନ୍ଦିରେ ତାକୁ ଦେଲେ ଭସାଇ ।
ରାତି ଦୁଇଘଡ଼ି ଗଡ଼ିଲା ପୁଅର ନାହିଁ ଦେଖା
ଘଣ୍ଟର ଶଣ୍ଟର କମଳା ମନେ ଲଭିଲେ ଶଙ୍କା ।
ମାଆ ଝିଅ ଦୁହେଁ ଉପାସେ ରହିଥିସଲ ଯେବାରେ
ପୂଜା ଆରମ୍ଭିଲେ ମାଆର ଯେବା ଅଟେ ବିଧିରେ ।
ନାନା ବର୍ଣ୍ଣେ ରଞ୍ଜି ଲହିଲେ ଅମ୍ବିକା ଚିତ୍ରପଟ
ତାର ତଳେ ଦ୍ରବ୍ୟ ଆସନେ ସ୍ଥାପି ରଖିଲେ ଘଟ ।
ନାରିକେଳ ଚୂତପଲ୍ଲବ ରକ୍ତଝୀନ ବସନ
ଘଟପରେ ସ୍ଥାପି ମଣ୍ଡିଲେ ଦେବୀ ଫୁଲ ଚନ୍ଦନ ।
ଶୁଭ ହୁଳହୁଳି ପକାଇ ଦେଲେ ଜାଗର ଜାଳି
ଷୋଳ ଉପଚାରେ ପୂଜିଲେ ଦୁର୍ଗାଚରଣେ ଢାଳି ।
ବେଲପତ୍ର କଳାଦହନା ସବୁ ଅଏଁଲା ଡାଳ,
ଫଳସଙ୍ଗେ ଦେଲେ ଚଢ଼ାଇ ରକ୍ତ ମନ୍ଦାର ମାଳ ।
ମଦନସୁନ୍ଦର ମଙ୍ଗଳ ମନେ କାମନା କଲେ
ଫୁଲ ଦୁର୍ବାକ୍ଷତ ବରତ ଯତ୍ନେ ଚଢ଼ାଇ ଦେଲେ ।୨୦।

—o—

କରଯୋଡ଼ି ତହୁଁ ମାଳଶ୍ରୀ କହେ ଭକତି କରି
ଝାଇକ ମୋହର ସରବ ଶୁଭେ ରଖ ଶଙ୍କରୀ ।
ପୁଷ୍ପାଞ୍ଜଳି ଦେଇ ଅଭୟା ପଦେ ଶରଣ ଗଲେ
ହରବମସ୍ତ୍ରୀ ମାତା ଭକତି ପୂଜା ଭାବେ ଦେନଲେ ।

ଭକତ ବତ୍ସଳା ବୋଲିଣ ଭବେ ଉଡ଼ଇ ବାନା 
ଭକତି କରଣ ସେବଲେ ପୂରେ ମନକାମନା ।
ଭକତିରେ ବଶ ହୋଇଲେ ଭବ ଦେଖି ତାଙ୍କର
ଭକତ ଆତଙ୍କ ଫେଡ଼ିବା ପାଇଁ ହେଲେ ବାହାର ।
ମଦନସୁନ୍ଦର ନିଧନେ ହୋଇ ହରଷ ଅତି
ସୁଖ ଶେଯେ ଶୋଇଅଛନ୍ତି ଯହିଁ ସେ ନରପତି ।
ଜଗତ ଜନନୀ ଆପଣ ତହିଁ ପ୍ରବେଶ ହେଲେ,
ସ୍ୱପନେ ଗମ୍ଭୀର ବଚନେ ନୃପତିଙ୍କ ଭାଷିଲେ ।
ଗର୍ବ ବନ୍ଧୁ ବାସେ ମୋହର ଦେଲୁ ଯେତେ କଷଣ
ଦେଇଛୁ ତା ମୋତେ ସହୁଛି ସ୍ଥିତି କରି ପାଷାଣ
ବିପଦ ନାଶିନୀ ମୋ ନାମ ମୋର ଶରଣ ଯାଇ,
ଭବେ କେ ବିଭବ ନ ଲଭି ତାର ବିପଦ ଥାଇ ।
ଚିତ୍ତ ଯାର ଥରେ ଯାଇଛି ମୋର ଚରଣ ତଳକୁ,
ବିପଦେ ମିଶିଣ ବିପଦ କିସ କରିବ ତାକୁ ।
ମଦନ ସୁନ୍ଦର ନିଧନ ପାଇଁ ପେଶିଲୁ ବନ,
କପଟରେ ବିଷ ମିଶାଇ ତାକୁ ଦେଲୁ ଭୋଜନ ।
କୂପରେ ନେଇଣ ଭସାଇ ଦେଲୁ ଅଥଳ ଜଳେ ।
ଉଦ୍ଧରି ଧଇଲି ଦାସକୁ ମୋର ଅଭୟ କୋଳେ
ମଦନ ସୁନ୍ଦର ଲଭିବା ପାଇଁ ଝିଅ ତୋହର,
କାମନା କରିଣ ଶରଣ ଗଲା ମୋର ପୟର ।
ପରସନେ ବର ଦେଇଛି ହେବ ନାହିଁ ଅନ୍ୟଥା,
ଦାସେ କୋପ ବହ୍ନି ମନରେ ମୋର ଦେଇଛୁ ବ୍ୟଥା ।
ମଦନ ସୁନ୍ଦର ଭାଇର ଶୁଭ ମନରେ ଭାଳି
ବ୍ରତ ପାଳିଛି ମାଳତୀ ମୋ ନାମେ ଜାଗର ଜାଳି ।
ମାଆ ତାର ପୁଅ ପାଇଁକି ମୋରେ ଶରଣ ଗଲା,
ମୋର କୃପାବଳେ ପୁଅର କଟି ଉଣା ନୋହିଲା ।

କୋଟିଏ ଟୋପରେ ଅପିଣ ମିଶି ଗୋଟିଏ ହେଲେ,
ଜାଣି ନ ପାରିବେ ମଦନେ ମୋର କରୁଣା ଥିଲେ ।
ଭଲଗତି ଗୃହୁଁ ରାଜନ ଯଦ୍ଧ ଏଣୁ ଏଣିକ
ମଦନଙ୍କୁ ଦିଅ ବିବାହ ତୋର ଜେମାମଣିକ ।
ମାୟା କୁମରକୁ ନେଇଣ ଦେଇଅଛୁ ଉପାଇ,
ମଦନ ସୁନ୍ଦର ଶୋଇଛନ୍ତି ଦେଖ ଉଆସେ ଯାଇ ।
ଜ୍ଞାନ ନାହିଁ ତାର ଘୋଟିଛି ଅଙ୍ଗେ ଗରଳ ନିଶା
ବର୍ଷିରେତ ତାର ଭଉଣୀ କରି ଅଷ୍ଟମୀ ଉଷା
ଚଢ଼ାଇଛନ୍ତି ମୋର ଚରଣେ ଶତେ ଅକ୍ଷୟ ଦୁବ,
ତାହା ଆଣିଦେଲେ ଛୁଅଁଇ ବିଷ ଦୂର ହୋଇବ ।
ଏତେ କହି ଦେବୀ ଉଆସ ତେଜ ଅନ୍ତର ହେଲେ,
ନିଦ୍ରା ତେଜ ରାଜା ସ୍ୱପନ କଥା ହେଜ ବସିଲେ ।
ଯାଇଣ ଦେଖିଲେ ସତକୁ ସତ ମନ୍ତ୍ରୀ କୁମର,
ଅଜ୍ଞାନେ ଶୋଇଛନ୍ତି ଅପୂର୍ବ ତେଜ ଦିଶେ ତାହାର ।
ଜଗତ ଜନନୀ ଆଦେଶ ରାଜା ପାଳନ କଲେ,
ସୁରସେନ ମନ୍ତ୍ରୀ ଡ଼କାଇ ସବୁ ପ୍ରକାଶ କଲେ ।
ଫୁଲ ଦୁବ ଧରି ମାଳିଣୀ ଆସି ପ୍ରବେଶ ହେଲ,
ଯାତଥର ଗଣ୍ଠି ଭାଇର ଦେହେ ଛୁଆଇଁ ଦେଲ ।
ମନ୍ତ୍ରମା ବସ୍ତାରି ମନ୍ତ୍ରମାମସ୍ତୀ ହରିଲେ ବିଷ ।
ଉଠିଲେ ମଦନସୁନ୍ଦର ସର୍ବେ ହେଲେ ହରଷ ।
ମଦନସୁନ୍ଦର ନିକଟେ ରାଜା କ୍ଷମା ମାଗିଲେ
ଝିଅକୁ ମଦନସୁନ୍ଦର କରେ ସମର୍ପି ଦେଲେ ।
ଦୁର୍ଗତିନାଶିନୀ କୃପାରୁ କଥା ହୋଇଲା ଶେଷ
ହୁଳହୁଳି ଦିଅ ହରଷେ ମାଆ ହୋଇବେ ତୋଷ ।
ତମଭାଇଙ୍କର ସଙ୍ଗତେ ମୁହିଁ ଅଟଇ ଜଣେ
ମୋ ପାଇଁ ଟିକିଏ ଗୁହାରି କର ମାଆ ଚରଣେ ।

# ଶ୍ରୀ ଦୁର୍ଗାମାଳଶ୍ରୀ

ଜୟ ଦୁର୍ଗା ଦୁର୍ଗତି ନାଶିନୀ ବାସିନୀ ଶ୍ୱେତ କାଳକା
ଗୋ ମା, ଶଙ୍କର କାଳକୁ ତୁ ହେଉ ସଖା ଗୋ ମା ।

ଗିରିଜାନନ୍ଦନୀ ଗୁଣବନ୍ତି କାଳ ଗଳାରେ ଶୋଭେ ତୋ ମୁକୁତା ମାଳ । ଗଜ ଗମନୀ ବଦନ ଚନ୍ଦ୍ରମା, ଗୋ ମା, କେ କନ୍ଧପାରେ ତୋର ଗୁଣସୀମା ଗୋ ।୧

ଜାନୁ ଯୁଗ ରମ୍ଭାତରୁ ସମ ବରଣ ଚମ୍ପକ ମାଣିକ, ପାଣି ପଙ୍କଜ ଗମନ ମତ୍ତଗଜ ସପତ କୋକିଳ ବାଣୀକ । ଗୁଗୁଳ ଗନ୍ଧ ଗନ୍ଧ, କୁସୁମ ମନ୍ଦ ମନ୍ଦ ବଦନ ଦନ୍ଧ ଦନ୍ଧ, ଶୋଭିତ ଗୋ ମା, ପଦ୍ମରେ ଶୋଭେ ରଙ୍ଗ ଅଳତା ଗୋ ।୨।

ଚରଣେ ନୁପୁର ଘଣ୍ଟି ବାଜେଣି, ଶ୍ରୀଅଙ୍ଗେ ଶୋଭେ ତୋ ରଙ୍ଗ କାଛେଣି, ରଙ୍ଗବଦନ, ରଙ୍ଗ ଡୋଳା ବେନ ଗୋ ମା, ରଙ୍ଗମୟ ଅଙ୍ଗ ବସ୍ତ୍ର ରୁଦ୍ରାଣି, ଗୋ ମା । ଖଡ଼୍ଗ ଖର୍ପର ତ୍ରିଶୂଳ ମୁଦଗର ଗଦାପଦ୍ମ ଚତୁର୍ଭୁଜେ ଶୋଭିତ ଗୋ ।୩।

ବକ୍ଷେ ମୁଣ୍ଡହାର ମାଳ ଝର୍ଝର ରୁଧିର ଧାରଧାର ବଳମ୍ବି ତ ପାଟି, ଘାଘଜଟା କଟିତ୍ରୁକୁଟି ଶୋଭିତା ସୁରଞ୍ଜ ନାସିକା ଗୋ ମା, ଭୟଙ୍କର ରୂପ ବଦନ ଶଙ୍କା ଗୋ ।୪।

କଣ୍ଠେ ଖାର ବୋଲ ମୁକୁତାଝର, କ୍ଷଣକେ ବେଶ ନୁଆଆକ ତୋର, କ୍ଷଣେ ବାରଙ୍ଗନା କ୍ଷଣେ ଷୋଡ଼ଶୀ ତୋ ମା । ଯେଉଁ ରୂପ ଦେଖି ଭୁଲିଲେ କାଶି । ଜିହ୍ୱା ଲହ ଲହ ଦଶନ ଝହ ଝହ ରୁଚିର ସୁଶୋଭିତା ଗୋ ।୫।

କ୍ଷୀଣ କଟିବାସ, ମନ୍ଦ ମନ୍ଦ ହାସ ବଚନ ବଚନାତ ଭୂଷିତା ଅଧରେ ନିନ୍ଦଇ ବିମ୍ବଫଳ ଚହିଁ କୁସୁମ ତିଳଫୁଲ ନାସିକା ଗୋ ମା, ନୂପୁର ସୁନ୍ଦର ସୁର ନାସ୍ୱୀକା ଗୋ ।। ମଥାମଣି ଝସୁ ଭୁବନ ପାଏ । ଝଟକ ଦଶଇ ବିଜୁଳି ପ୍ରାୟେ, ଦେଖିଲେ ଯୋଗୀ ତୋ ତେଜବେ ଯୋଗ । ଗୋ ମା । କ୍ଷଣେ କାତ୍ୟାୟନୀ କ୍ଷଣେ ଭୈରବୀ ଗୋ ଦାନ୍ତ ରଟରଟ ଜିହ୍ୱା ଲହ ଲହ, ଖଡ୍‌ଗ ଝମ ଝମ ଝମକନ୍ତା ଗୋ ।୬।

ଦନୁଜ ତର ତର ପ୍ରକମ୍ପେ ଥରହର ଶରଣ ଶରଣ ବର୍ଣ୍ଣିତା । ଡ଼ବ ଡ଼ବ ଡ଼ମ୍ବରୁ ମୃଦଙ୍ଗ ଧୁ ରୁ ଧୁ ରୁ, ପତନ ଫିଣ ଫିଣ ଫରବତା ଗୋ ମା,ତାଣ୍ଡବ ନୃତ୍ୟର ତୁ ଜଗତ୍କି ତା ଗୋ ।୭।

ସକଳ କଥାରେ ଭୂଷିତ ବନ୍ଦନ । ତୋତେ ସୁମରିଲେ ରଘୁନନ୍ଦନ । ହରତା କରତା ତୁ ବରଦାତା ଗୋ ମା । ଶୂନ୍ୟରେ ରାମଙ୍କୁ ଦେଲୁ ବାରତା ଗୋ ମା । ମାର ମାର ଲଙ୍କା ଧ୍ୱଂସକର ଏକା କାଟ ଦଶଶିର ଦଶାନନଙ୍କୁ । ସଗୋଷ୍ଠ ସଜ୍ଜିତେ, ମରନ୍ତୁ ଦଇତେ ରାଜା କର ବିଭିଷଣଙ୍କୁ ଗୋ ।୮। ଜନକ ଦୁହିତା ଜନନ୍କର ମାତା ନିଅ ଯା ତୋ ନିଜ ରାଜ୍ୟକୁ ଗୋ ମା । ଶୁଣିଥିଲେ ରାମ ତା ହୁକୁମକୁ, ଆଦେଶ କଲେ ସେ ସୈନ୍ୟମାନଙ୍କୁ ଚହୁଁ ବାନରେ ବିଧ୍ୱଂସିଲେ ଲଙ୍କା, ସୁଗ୍ରୀ ଅଙ୍ଗଦ ହନୁ ରଣ ରଙ୍କା, ଦୈତ୍ୟ ବାନର ହେଲେ ମିଶାମିଶି ଗୋ ମା ଘୋର ଯୁଦ୍ଧ କଲେ ଦିବସ ନିଶି, ସୁମିତ୍ରା ତନୁଜ ଧରଣ ଧଇର୍ଯ୍ୟ, ଇନ୍ଦ୍ରଜିତଙ୍କୁ ସେ ମାଇଲେ ଏକା ଗୋ ।୯।

ଶ୍ରୀରଘୁନନ୍ଦନ, କୋଦଣ୍ଡ ଧରଣ ଦୈତ୍ୟ ଦଶମାଥ ଛେଦିଲେ ଏକା, ଉକ୍ଷ କପିମାନେ ଆନନ୍ଦ ହୋଇଣ ଯେ ଯାହା ଭୁବନକୁ ଗଲେ ଗୋ ମା, ସୀତାଙ୍କୁ ଶ୍ରୀରାମ ଅଯୋଧ୍ୟା ନେଲେ ଗୋ । ୧୦।

ସଙ୍ଗେ ଥିଲେ ଯେତେ ନୃପତି ଗଣ, ସୁଗ୍ରୀବ ଅଙ୍ଗଦ ହନୁ ବିଭୀଷଣ, କେହି ତ ରକ୍ଷା ଗୋ ନ କରି ପାରି ଗେ। ଆତଙ୍କେ ଡାକିଲେ ତୋ ନାମ ଧରି ଗୋ, ଗୁଣ ଟଙ୍କାର ହସ୍ତି କହୁଙ୍କାର ଦେଖି ସୈନ୍ୟ ଗଣ ଶଙ୍କିଲେ ତାର, ଖଡ଼୍‌ଗର ଝଣ ଝଣ ଧନୁର ଟଣ ଟଣ ଶୁଣି ଭୟେ ଭାଜିଲେ ଟେ। ମା, କହିଲେ ମନାଇ ଚରଣେ ବନୋଇ କେତେ ବଳୀ ଭେଜା ଯାଚିଲେ ଗୋ ।୧୧

ବନ୍ଧରେ ପଡ଼ିଲେ ନୃପତିବର, ମଉଡ଼ମଣି କିଶୋର ସୁନ୍ଦର ତୁ ଯାଇ ଯବନ କଣ୍ଠେ ବିଛିକ, ସମର୍ପି ଦେଇ ତାଙ୍କୁ ତୋଷେ ରାଜ୍ୟ ଗୋ ମା, ଆସନ୍ତୁ ନରେଶ ହୁଅନ୍ତୁ ହରଷ, କରୁ କୃପା ତାଙ୍କୁ ଯତନ, ହସ୍ତ, ରାଜ ସୈନ୍ୟ ହୋଇ ତୋଷମନ ବାହୁଡ଼ ଆସନ୍ତୁ ବଦନ ଗୋ ତୋର କୃପାବଳେ ଶୀଘ୍ର ହେଉ କଷ୍ଟ ମୋଚନ ଗୋ ।୧୨।

କହଇ କବ ଯେ କରି ବିନତି । ହେନ ମୋ ଉକତି ତୁ ଦୟାବତି, ଅସୀମ ଅଟଇ ତୋର ମହିମା, କେ ବର୍ଣ୍ଣି ପାରିବ ତୋ ଗୁଣ ସୀମା । ଅଭୟ ଦାୟିନୀ, ଆତଙ୍କ ନାଶିନୀ ସ୍ୱ କରୁଣା ବଳେ ତୁ ବରଦାତା ଗୋ ୧୩।

କେଶରୀ ପୃଷ୍ଠେ ବିଜୟେ ତୋହର । ଦୁଷ୍ଟ ଦନୁଜଙ୍କୁ କରୁ ସଂହାର । ଗଳାରେ ଶୋଭିତ ରକ୍ତ ମନ୍ଦାର, ବିଲ୍ୱପତ୍ରଯେ ଦସ୍ତୁଣୀର ହାର ଗୋ ମା, ଗର୍ବିଙ୍କର ଗର୍ବ, କରୁ ତୁ ନିଖର୍ବ ସନ୍ଥ ଜନେ ପାଇଥାଉ ତୁ ଏକା ଗୋ ।୧୪।

ଆଗପଦ ମୋର ନୁହେଁ ରଚନା । ହସ୍ତଦଣ ପଦଠାରୁ କଳ୍ପନା । ଲେଖିଲି ଅତି ବିଷାଦ ଚିତ୍ତରେ, ସଂସ୍କାରକ ହେଲେ ହିତୀୟ ବାରେ ଗୋ ମା, ସଂଶୋଧିତ ପଦ, ହୋଇଗଲା ଗଦଗଦ ଲେଖିବ ମାଗୋ ତୋ କରୁଣା ବଳେ ।୧୫।

ରଚୟିତାଙ୍କର ନାମ ଏଥିରେ ନ ଥିବାରୁ ମୁଁ ସନ୍ଦିଗ୍ଧ ଚିତ୍ତରେ । ସମ୍ପୂର୍ଣ୍ଣ ଭାବରେ ନ ଥିଲା ରଚନା, ତେଣୁ ମନେ ମୋର ହେଲା ଭାବନା, ଗୋ ମା, କଲି ପୂରଣ, ତୋ ଦୟାରୁ ପୁଣ ଜଗନ୍ନାଥ ସିଂହ ଗାବଇ ଏକା ଗୋ ।୧୭।

ଶ୍ରୀ ଦୁର୍ଗାମାଳଶ୍ରୀ ସମ୍ପୂର୍ଣ୍ଣ



## ବ୍ରତର ଭୂମିକା

ଏହି ଉତ୍କଳ ଦେଶରେ ବିଶେଷତଃ ପଶ୍ଚିମାଞ୍ଚଳରେ ପ୍ରାୟ ଅଧିକାଂଶ ହିନ୍ଦୁ ପରିବାର ସ୍ତ୍ରୀ ଓ କନ୍ୟାମାନେ ଭ୍ରାତୃମଙ୍ଗଳ କାମନାରେ ପ୍ରତିବର୍ଷ ଆଶ୍ୱିନ ମାସରେ ଏହି ବ୍ରତ ପାଳନ କରିଥାନ୍ତି । ପ୍ରତିବର୍ଷ ଏହି ଓଷା ଶୁକ୍ଳ ଅଷ୍ଟମୀ ତିଥିରେ ସମାହିତ ହୋଇଥାଏ । ଏହି କଠିନ ଅନଶନ ତପସ୍ୟାରେ ଉପାସନା ଶୁଭ ବାସରେ ଭ୍ରାତୃ ସମାଜକୁ କଲ୍ୟାଣ ବୃଦ୍ଧି ହୋଇଥାଏ ।

ଯେଉଁ ଭଗ୍ନୀମାନେ ପିତାଳୟରେ ଥିବାବେଳେ ଭାଇ ଜିଉନ୍ତିଆ ନାମକ ବ୍ରତ ପାଳନ କରନ୍ତି, ସେମାନେ ନିଜ ନିଜ ଭାଇଙ୍କର ଅଶେଷ ମଙ୍ଗଳ କାମନାକରି ଭଗ୍ନୀର ଗୌରବ ପ୍ରତିପାଦନ କରିଥାନ୍ତି ।

। ଇତି ।

ପ୍ରକାଶକ

ଫୋନ-୭୨୨୨୫୦

ମୁଦ୍ରଣ—ଜନସାହିତ୍ୟ ପ୍ରେସ, ଭଗତପୁର କଟକ-୧୯୯୯